ନେହେରୁ ବାଳ ପୁସ୍ତକାଳୟ

# ଅହଂକାରର ପରାଜୟ

ଯୋଗେନ୍ଦ୍ରନାଥ ଶର୍ମା 'ଅରୁଣ'

ଅନୁବାଦ
କୃତ୍ତିବାସ ନାୟକ

ଚିତ୍ରାଙ୍କନ
ଫକରୁଦ୍ଦୀନ୍




ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ISBN 978-81-237-6860-1
ପ୍ରଥମ ସଂସ୍କରଣ 2013 (ଶକାବ୍ଦ 1935)
ପୁନର୍ମୁଦ୍ରଣ 2016 (ଶକାବ୍ଦ 1937)

Original : Abhiman Ki Haar *(Hindi)*
Translation : Ahankarara Parajaya (*Odia*)
₹ 30.00
ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନେହେରୁ ଭବନ, ୫, ଇନ୍‌ଷ୍ଟିଚ୍ୟୁସନାଲ ଏରିଆ, ଫେଜ୍ - II
ବସନ୍ତକୁଞ୍ଜ, ନୂଆ ଦିଲ୍ଲୀ - 110070 କର୍ତ୍ତୃକ ପ୍ରକାଶିତ
Website : www.nbtindia.gov.in





ବହୁତ ଦିନ ତଳର କଥା । ମହାରାଜ ନନ୍ଦ ରାଜ୍ୟ ଶାସନ କରୁଥିଲେ । ତାଙ୍କର ମହାମନ୍ତ୍ରୀ ଶକଟାର ଜଣେ ଉଦାର ସ୍ୱଭାବର ବ୍ୟକ୍ତି ଥିଲେ । ମହାମନ୍ତ୍ରୀଙ୍କର ବୁଦ୍ଧିମତ୍ତା ଓ ଚତୁରପଣିଆକୁ ରାଜ୍ୟବାସୀ ବେଶ୍ ପସନ୍ଦ କରୁଥିଲେ ।

ମହାରାଜ ନନ୍ଦ ତାଙ୍କର ବୁଦ୍ଧିମାନ ମହାମନ୍ତ୍ରୀଙ୍କ ସହିତ ପରାମର୍ଶ କରି ପ୍ରତ୍ୟେକ ଛୋଟବଡ଼ ନିଷ୍ପତ୍ତି ନେଉଥିଲେ । ତେଣୁ

ସମସ୍ତେ ମହାମନ୍ତ୍ରୀଙ୍କୁ ଉଚିତ ସମ୍ମାନ ଦେଉଥିଲେ । ରାଜ୍ୟର ପ୍ରତ୍ୟେକ କ୍ଷେତ୍ରରେ ମହାମନ୍ତ୍ରୀଙ୍କର ଗଭୀର ପ୍ରବେଶ ଥିବାରୁ ସେ ଗୁଣୀ, ଜ୍ଞାନୀ ଓ ବୁଦ୍ଧିମାନଲୋକଙ୍କୁ ଚିହ୍ନି ଉପଯୁକ୍ତ ସମ୍ମାନ ଦେଉଥିଲେ ।

ମହାମନ୍ତ୍ରୀ ଶକଟାରଙ୍କର ସ୍ଥୂଳଭଦ୍ର ଓ ଶ୍ରୀୟକ ନାମରେ ଦୁଇଟି ପୁଅ ଥିଲେ । ଯକ୍ଷ ଓ ଯକ୍ଷଦିନ୍ନା ପ୍ରଭୃତି ନାମରେ ଆହୁରି ସାତୋଟି ଝିଅ ବି ଥିଲେ । ସେହି ଝିଅମାନଙ୍କର ସ୍ମରଣଶକ୍ତି ଅତି ପ୍ରବଳ ଥିଲା । ଈଶ୍ୱରଙ୍କ ଚମତ୍କାରିତା ଯୋଗୁଁ ସେ ଝିଅମାନେ ସବୁକଥାକୁ ମନେରଖି ପାରୁଥିଲେ । କୌଣସି ଲୋକ ଯଦି କିଛିକଥା କହିଦିଏ, ତାକୁ ଥରେ ମାତ୍ର ଶୁଣି ପ୍ରଥମ ଝିଅଟି ସେକଥାକୁ ମୁଖସ୍ଥ କରିପାରୁଥିଲା । ଦ୍ୱିତୀୟ ଝିଅଟି ସେକଥାକୁ ଦୁଇଥର ଶୁଣିଲେ, ନିଖୁଣ ଭାବରେ ତାକୁ ଦୋହରାଇ ପାରୁଥିଲା । ସେହିପରି ତୃତୀୟ ଝିଅଟି ସେକଥାକୁ ତିନିଥର ଶୁଣିବା ପରେ ଏବଂ ଚତୁର୍ଥ ଝିଅଟି ଚାରିଥର ଶୁଣିବା ପରେ ପୁଣି ସେହିପରି ସପ୍ତମ ଝିଅଟି ସାତଥର ଶୁଣିବା ପରେ ସେକଥାକୁ ଠିକ୍ ଅବିକଳ ନକଲ କରି ଦୋହରାଇ ପାରୁଥିଲେ ।

ନନ୍ଦରାଜାଙ୍କ ରାଜଦରବାରରେ କବି ବରରୁଚି ବି ରହୁଥିଲେ । ସେ ଜଣେ ପ୍ରଭାବଶାଳୀ କବି ଥିଲେ । ତାଙ୍କ ଉପରେ ପ୍ରସନ୍ନ ହୋଇ ରାଜା ତାଙ୍କୁ କବିସମ୍ରାଟ ଉପାଧିରେ ଭୂଷିତ କରିଥିଲେ ।

କବି ବରରୁଚି ଜଣେ ଭଲ ପଣ୍ଡିତ ଥିଲେ ସତ, କିନ୍ତୁ ସେ ଥିଲେ ଭାରି ଅହଂକାରୀ । ଅନ୍ୟ କବିମାନଙ୍କୁ ଯେତେବେଳେ ଇଚ୍ଛା ସେ ଅପମାନିତ କରିପକାଉଥିଲେ । ଯେହେତୁ ସେ ରାଜାଙ୍କର କୃପାର ପାତ୍ର, ତେଣୁ ତାଙ୍କୁ କେହି ସାହସ କରି କିଛି କହିପାରୁ ନଥିଲେ ।

ପ୍ରକୃତ କଥା, କବି ବରରୁଚିଙ୍କର କବିପ୍ରତିଭାକୁ ଦେଖି ମହାମନ୍ତ୍ରୀ ଶକଟାର ତାଙ୍କୁ ରାଜଦରବାରକୁ ଆଣିଥିଲେ । ଶକଟାର ସେଦିନର କଥାକୁ ଭୁଲିନାହାନ୍ତି, ଯେଉଁଦିନ ତାଙ୍କର କହିବା ଅନୁସାରେ ବରରୁଚି ଶହେ ଆଠଟି ଶ୍ଳୋକ ରଚନା କରି ରାଜଦରବାରରେ ରାଜାଙ୍କୁ ଶୁଣାଇଥିଲେ । ଗୁଣଗ୍ରାହୀ ମହାମନ୍ତ୍ରୀଙ୍କ ଇଙ୍ଗିତରେ କବିଙ୍କୁ ସେଦିନ ଭୂରିଭୂରି ପ୍ରଶଂସା ମିଳିଥିଲା । ମହାମନ୍ତ୍ରୀଙ୍କ ଉପରେ ରାଜାଙ୍କର ଅତୁଟ ବିଶ୍ୱାସ ଥିଲା । ତେଣୁ ରାଜା ନନ୍ଦ ପ୍ରସନ୍ନ ହୋଇ ବରରୁଚିଙ୍କୁ ଶହେ ଆଠଟି ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କରିଥିଲେ । ସେହିଦିନଠାରୁ ତାଙ୍କୁ ରାଜକବି ଘୋଷଣା କରି ରାଜଦରବାରରେ ରଖିଥିଲେ ।

କବି ବରରୁଚି ତ ଆଗରୁ ଅହଂକାରୀ ଥିଲେ । ସେ ଗୁଣଗ୍ରାହୀ ମହାମନ୍ତ୍ରୀଙ୍କର ଉପକାରକୁ ଭୁଲିଯାଇ ଦିନକୁ ଦିନ ଆହୁରି ଅହଂକାରୀ ହୋଇ ଚାଲିଲେ । ସେ ନିଜକୁ ନିଜେ କବିମାନଙ୍କର ମଉଡ଼ମଣି ବୋଲି ଭାବୁଥିଲେ । ସେ କହୁଥିଲେ, ମୁଁ ଥିଲେ ଅନ୍ୟ ଜଣେ କବି ଆସି ରାଜାଙ୍କ ଆଗରେ କବିତା ପାଠ କରିବାକୁ ସାହସ କରିପାରିବେ ନାହିଁ ।

ଅହଂକାରୀ କବି ବରରୁଚିଙ୍କ ମନରେ ଲୋଭ ବି ବଢ଼ିଚାଲିଥିଲା । ସେ ଭୁଲିଗଲେ, ମହାମନ୍ତ୍ରୀ ଶକଟାରଙ୍କ ପ୍ରଶଂସା ଓ ସହଯୋଗରେ ସେ ଆଜି ରାଜକବି ହୋଇପାରିଛନ୍ତି । ସେ ଭାବିଲେ ରାଜା ତ

ପ୍ରତ୍ୟେକ ଶ୍ଳୋକ ପାଇଁ ମତେ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ଦେବାପାଇଁ କହିଛନ୍ତି । ମୁଁ ପ୍ରତ୍ୟେକ ଥର ଶହେ ଆଠଟି ଶ୍ଳୋକ ଶୁଣାଇ ରାଜକୋଷରୁ ଶହେ ଆଠଟି ସ୍ୱର୍ଣ୍ଣମୁଦ୍ରା ନେଇପାରିବି । ଲୋଭୀ କବି ବରରୁଚି ଏକଥା ଭାବି ମନେ ମନେ ବହୁତ ଖୁସିହେଲେ ।

ତା'ପରଦିନଠାରୁ ବରରୁଚି ଶହେ ଆଠଟି ଶ୍ଳୋକ ଶୁଣାଇ ରାଜକୋଷରୁ ଶହେ ଆଠଟି ଲେଖାଏଁ ସ୍ୱର୍ଣ୍ଣମୁଦ୍ରା ନେଇଚାଲିଲେ । ଦରବାରରେ ଥିବା ସମସ୍ତ କର୍ମଚାରୀ ଭାବିଲେ, ଏଥର ବରରୁଚିଙ୍କର ଭାଗ୍ୟ ଖୋଲିଗଲା । ଏଣେ କବିଙ୍କର ଗର୍ବ ଓ ଅହଂକାର ବି ବଢ଼ି ବଢ଼ି ଚାଲିଲା ।

ମହାମନ୍ତ୍ରୀ ଶକଟାର ସବୁ ଘଟଣା ଦେଖି ଦେଖି ଦିନେ ଭାବିଲେ, ମୋର ଭାବନାରେ ବୋଧହୁଏ କିଛି ଭୁଲ୍ ରହିଗଲା । ରାଜା ନନ୍ଦ ତ ମୋ ପରାମର୍ଶରେ ବରରୁଚିଙ୍କୁ ଏଭଳି ପୁରସ୍କାର ଦେବାର ବ୍ୟବସ୍ଥା କରିଛନ୍ତି । ମୋ ମୁହଁରୁ ପ୍ରଶଂସା ଶୁଣି ବରରୁଚିଙ୍କୁ ଜଣେ ପ୍ରତିଭାବାନ୍ କବି ଭାବରେ ପ୍ରତିଦିନ ରାଜକୋଷରୁ ସ୍ୱର୍ଣ୍ଣମୁଦ୍ରା ଦେଇଚାଲିଛନ୍ତି । ମହାମନ୍ତ୍ରୀ ଚିନ୍ତାକଲେ, ପ୍ରଜାମାନଙ୍କର ଧନରେ ହିଁ ରାଜକୋଷ ବଢ଼ିଛି । ରାଜକୋଷ ଉପରେ ହିଁ ରାଜ୍ୟର ଭବିଷ୍ୟତ ନିର୍ଭର କରେ ।

କିନ୍ତୁ କେଉଁ ମୁହଁରେ ସେ ରାଜାଙ୍କୁ ବରରୁଚିଙ୍କ ବିରୋଧରେ ପୁଣି କହିବେ ? କେମିତି ଜଣାଇବେ ଯେ ବରରୁଚି ହେଉଛନ୍ତି ଜଣେ ଲୋଭୀ ଏବଂ ଅହଂକାରୀ କବି ।

ତେଣୁ ସେ ବଡ଼ ଅଡୁଆରେ ପଡ଼ି ଚିନ୍ତିତ ହୋଇ ରହିଲେ ।

ହଠାତ୍ ଦିନେ ତାଙ୍କୁ ଗୋଟାଏ ଉପାୟ ମିଳିଗଲା । ମହାମନ୍ତ୍ରୀ ରାଜା ନନ୍ଦଙ୍କ ରାଜମହଲରେ ପହଞ୍ଚି ନମ୍ରତାର ସହିତ କହିଲେ, ''ମହାରାଜ, ଆପଣ ନିଜର ଉଦାରପଣିଆ ପାଇଁ ସାରା ରାଜ୍ୟରେ ପ୍ରଶଂସା ପାଉଛନ୍ତି । ମୁଁ ଏଥିପାଇଁ ବହୁତ ଆନନ୍ଦିତ । କିନ୍ତୁ ...'' ମହାମନ୍ତ୍ରୀ କଥା ମଝିରେ ଅଟକିଗଲେ ।

''କିନ୍ତୁ ପୁଣି କ'ଣ ? ମହାମନ୍ତ୍ରୀ ଶକଟାର । ଆପଣ ଅଟକିଗଲେ କାହିଁକି ?'' ଆଗ୍ରହର ସହିତ ରାଜା ନନ୍ଦ ପଚାରିଦେଲେ ।

ମହାମନ୍ତ୍ରୀ କହିଲେ, ''କ୍ଷମା କରିବେ, ମହାରାଜ । କବିସମ୍ରାଟ ବରରୁଚିଙ୍କୁ ଆପଣ ଯେଉଁ ଶହେ ଆଠଟି ଲେଖାଏଁ ସ୍ୱର୍ଣ୍ଣମୁଦ୍ରା ଦେଇଚାଲିଛନ୍ତି, ଏହା କ'ଣ ଉଚିତ କାର୍ଯ୍ୟ ?'' ନନ୍ଦରାଜା ମନ୍ତ୍ରୀଙ୍କ କଥାଶୁଣି କହିଲେ, ''ବାଃ, ମହାମନ୍ତ୍ରୀ ଶକଟାର । ଆପଣ ତ ନିଜେ କବି ବରରୁଚିଙ୍କର ପ୍ରଶଂସା କରିଥିଲେ । ଆପଣଙ୍କୁ ସମ୍ମାନ ଜଣାଇବା ଉଦ୍ଦେଶ୍ୟରେ ମୁଁ ବରରୁଚିଙ୍କୁ ସ୍ୱର୍ଣ୍ଣ ମୁଦ୍ରା ଦେଇଚାଲିଛି । ମୁଁ ନିଜେ ଦେବାର ହୋଇଥିଲେ, ତାହା ତ ଆଗରୁ କରିପାରିଥାଆନ୍ତି ।''

''ମୁଁ ଆପଣଙ୍କ ନିକଟରେ କୃତଜ୍ଞ ମହାରାଜ । ଆପଣ ମୋ ପ୍ରଶଂସାର ମାନରକ୍ଷା କରିଛନ୍ତି । କିନ୍ତୁ ମହାରାଜ, ଏବେ ବରରୁଚି ଆପଣଙ୍କୁ ସେହି ପୁରୁଣା ଶ୍ଳୋକଗୁଡ଼ିକୁ ଶୁଣାଉଛନ୍ତି ।'' ମହାମନ୍ତ୍ରୀ ନନ୍ଦରାଜାଙ୍କୁ କହିଲେ ।

ରାଜା ନନ୍ଦ କହିଲେ, ''ଯଦି ଏପରି ହୋଇଥାଏ, ତେବେ ଆସନ୍ତାକାଲି ଦରବାରରେ ସମସ୍ତଙ୍କ ଆଗରେ ତାହା ପ୍ରମାଣ କରିଦିଅନ୍ତୁ । ତାପରେ ମୁଁ ମୋର ନିଷ୍ପତ୍ତିକୁ ବଦଳେଇଦେବି ।''

ତା'ପରଦିନ ମହାମନ୍ତ୍ରୀ ରାଜଦରବାରକୁ ନିଜର ସାତୋଟିଯାକ ଝିଅଙ୍କୁ ସାଙ୍ଗରେ ଧରି ଆସିଲେ । ଦରବାରରେ କେହି ବି ମହାମନ୍ତ୍ରୀଙ୍କର ଯୋଜନା ବିଷୟରେ ଜାଣିପାରିଲେ ନାହିଁ ।

ରାଜା ନନ୍ଦ ଦରବାରରେ ପହଞ୍ଚିଲେ ।

କବିସମ୍ରାଟ ବରରୁଚି ପ୍ରତିଦିନ ପରି ରାଜାଙ୍କୁ ଶ୍ଳୋକ ଶୁଣାଇବାରେ ଲାଗିପଡ଼ିଲେ । ପୂର୍ବ ଅଭ୍ୟାସ ଅନୁସାରେ କବି ବରରୁଚି ଶ୍ଳୋକ ଶୁଣାଇ ସାରି ଗର୍ବର ସହିତ ମହାମନ୍ତ୍ରୀଙ୍କ ଆଡ଼କୁ ଚାହିଁଲେ ।

ମହାମନ୍ତ୍ରୀ ନିଜର ଦୁଇହାତ ଯୋଡ଼ି କହିଲେ, ''ମହାରାଜାଙ୍କର ଜୟ ହେଉ । ଆଜି କବିସମ୍ରାଟ ଯେଉଁ ଶ୍ଳୋକଗୁଡ଼ିକ ଶୁଣାଇଲେ, ତାକୁ ତ ସେ ଆଗରୁ କେତେଥର ପଢ଼ି ଶୁଣାଇସାରିଛନ୍ତି । ଏଗୁଡ଼ିକ ହେଉଛି ପୁରୁଣା ଶ୍ଳୋକ ।''

''କେଉଁ ମୂର୍ଖ କହୁଛି ଏଗୁଡ଼ିକ ପୁରୁଣା ଶ୍ଳୋକ ? ମୁଁ ଏହି ଦରବାରରେ ମହାମନ୍ତ୍ରୀ ଶକଟାରଙ୍କୁ ଆହ୍ୱାନ କରୁଛି, ସେ ତାଙ୍କ କଥାର ପ୍ରମାଣ ଦିଅନ୍ତୁ । କେହି ଯଦି ଏହି ଶ୍ଳୋକଗୁଡ଼ିକୁ ଆଗରୁ ଶୁଣିଥାନ୍ତି, ତେବେ ତାକୁ ଦୋହରାଇ ଦେଇ ମୋତେ ଶୁଣାନ୍ତୁ । ଯଦି ଏହାର ପ୍ରମାଣ ଦେଇ ନପାରନ୍ତି, ତେବେ ତାଙ୍କୁ ମହାରାଜ ଉପଯୁକ୍ତ ଦଣ୍ଡରେ ଦଣ୍ଡିତ କରନ୍ତୁ ।'' ଭୀଷଣ ରାଗରେ ଅହଂକାରୀ ବରରୁଚି ମହାମନ୍ତ୍ରୀଙ୍କୁ ଆହ୍ୱାନ କଲେ ।

ଦରବାରରେ ନୀରବତା ଖେଳିଗଲା ।

ମହାମନ୍ତ୍ରୀ ଠିଆ ହୋଇପଡ଼ି ନିଜର ପ୍ରଥମ ଝିଅକୁ ଡାକି କହିଲେ, ''କ'ଣ ତମେ ପୂର୍ବରୁ କେବେ ଏହି ଶ୍ଳୋକଗୁଡ଼ିକୁ ଶୁଣିଛ କି ?''

''ହଁ ବାପା, ଏବେ କବିବର ଯେଉଁ ଶ୍ଳୋକଗୁଡ଼ିକ ଶୁଣାଇଲେ, ସେଗୁଡ଼ିକୁ ଆଗରୁ ଶୁଣିସାରିଛି ।''

ଏତିକି କହି ସେ ମନେରଖିଥିବା ଶ୍ଳୋକଗୁଡ଼ିକୁ ଦୋହରାଇଦେଲା ।

ମହାମନ୍ତ୍ରୀ ଶକଟାର ପୁଣି ତାଙ୍କର ଦ୍ୱିତୀୟ ଝିଅକୁ ଡାକି ସେହି ପ୍ରଶ୍ନ ପଚାରିଲେ, ''ଝିଅ, ସର୍ବଶ୍ରେଷ୍ଠ କବି ବରରୁଚିଙ୍କର ଏହି ଶ୍ଳୋକଗୁଡ଼ିକୁ ତୁ ଆଗରୁ କେବେ ଶୁଣିଛୁ କି ?''

ଦ୍ୱିତୀୟ ଝିଅଟି କହିଲା, ''ହଁ ବାପା । ତା'ପରେ ସେ ଶ୍ଳୋକଗୁଡ଼ିକୁ ଦୋହରାଇଦେଲା ।

ମହାମନ୍ତ୍ରୀ ଶକଟାର ଜଣକ ପରେ ଜଣେ ତୃତୀୟ, ଚତୁର୍ଥ, ପଞ୍ଚମ, ଷଷ୍ଠ ଓ ସପ୍ତମ ଝିଅଙ୍କୁ ଡାକିଲେ । ସେମାନେ ମଧ୍ୟ ଦରବାରରେ ଶୁଣିଥିବା ଶ୍ଳୋକଗୁଡ଼ିକୁ ସହଜରେ ଦୋହରାଇଦେଲେ ।

ଶ୍ଳୋକଗୁଡ଼ିକୁ ଶୁଣିସାରି ରାଜା ନନ୍ଦ କବିସମ୍ରାଟ ବରରୁଚିଙ୍କ ଉପରେ ଭୀଷଣ ରାଗିଗଲେ । ବରରୁଚିଙ୍କୁ ସ୍ୱର୍ଣ୍ଣମୁଦ୍ରା ଦେବା ବନ୍ଦ କରିଦେଲେ ।

ବରରୁଚିଙ୍କର ଗର୍ବ ଓ ଅହଂକାର ଭୀଷଣ କ୍ରୋଧରେ ବଦଳିଗଲା । ସେ ରାଜା ନନ୍ଦ ଓ ମହାମନ୍ତ୍ରୀ ଶକଟାରଙ୍କୁ ପାନେ ଚଖେଇଦେବାକୁ ସ୍ଥିର କଲେ । ପୂର୍ବରୁ ମହାମନ୍ତ୍ରୀ ତାଙ୍କର ଯେଉଁ ଉପକାର କରିଥିଲେ, ସେକଥାକୁ ବରରୁଚି ଭୁଲିଗଲେ ।

ଗର୍ବ ଓ ଅହଂକାର ମଣିଷର ବୁଦ୍ଧିକୁ ନଷ୍ଟ କରିଦିଏ । ଏଥର ବରରୁଚିଙ୍କର ଧ୍ୟାନ ସେହି ଗୋଟିଏ କାମରେ ଲାଗି ରହିଲା । କେମିତି କଳେବଳେ କୌଶଳେ ସେ ରାଜା ନନ୍ଦ ଓ ମହାମନ୍ତ୍ରୀଙ୍କୁ ଅପମାନିତ କରିପାରିବେ ? ଜନମାନସରେ ସେ କେମିତି ପ୍ରଭାବ ପକାଇବେ, ଯାହା ଫଳରେ ସେମାନେ ସମସ୍ତଙ୍କ ଦୃଷ୍ଟିରେ ଛୋଟ ହୋଇଯିବେ ।

ଶେଷରେ କବି ବରରୁଚି ଗୋଟିଏ ଯୋଜନା କଲେ । ବଡ଼ି ସକାଳୁ ଗଙ୍ଗାରେ ସ୍ନାନ କରିବାକୁ ଚାଲିଗଲେ । ଅଣ୍ଟାଏ ପାଣିରେ ଠିଆହୋଇ ସେ ଖୁବ୍ ଉଚ୍ଚ ସ୍ୱରରେ ଗଙ୍ଗାମାତାଙ୍କ ସ୍ତୁତି ଓ ଶ୍ଳୋକ ଗାଇବା ଆରମ୍ଭ କରିଦେଲେ ଯେମିତିକି ସେଠାକୁ ଆସୁଥିବା ପ୍ରଜାମାନେ ସେ ଶ୍ଳୋକକୁ ଭଲଭାବରେ ଶୁଣିପାରିବେ ।



ଧୀରେ ଧୀରେ ଗଙ୍ଗାସ୍ନାନ କରିବା ପାଇଁ ଆସୁଥିବା ଲୋକମାନଙ୍କ ସଂଖ୍ୟା ବଢ଼ିଚାଲିଲା । ତାଙ୍କୁ ଦେଖି ବରରୁଚି ଆହୁରି ଉଚ୍ଚସ୍ୱରରେ ଗଙ୍ଗାମାତାଙ୍କର ସ୍ତୁତି ଗାନ କରିଚାଲିଲେ ।

ସେଠାରେ ଜମା ହୋଇଥିବା ଲୋକମାନେ ଗୋଟାଏ ବିଚିତ୍ର ଘଟଣା ବି ଦେଖିବାକୁ ପାଇଲେ । ଗଙ୍ଗାମାତାଙ୍କ ସ୍ତୁତି ଶେଷ ହେବାପରେ ଗଙ୍ଗାଜଳ ଭିତରୁ ଗୋଟାଏ ହାତ ଉପରକୁ ଉଠିଲା । ଦର୍ଶକମାନେ ଦେଖିଲେ, ସେହି ହାତରେ ଥିଲା ଶହେ ଆଠଟି ସ୍ୱର୍ଣ୍ଣମୁଦ୍ରାର ଗୋଟାଏ ମୁଣା ।

ବରରୁଚି ଉଚ୍ଚସ୍ୱରରେ ଗଙ୍ଗାମାତାଙ୍କର ଜୟଧ୍ୱନି ଦେଇ ସେ ସ୍ୱର୍ଣ୍ଣମୁଦ୍ରାଥିବା ମୁଣାଟିକୁ ଉଠେଇ ଆଣିଲେ । ଲୋକମାନେ ଦେଖିଲେ, ସ୍ୱର୍ଣ୍ଣମୁଦ୍ରା ମୁଣାଟିକୁ ଉଠେଇ ନେବାମାତ୍ରେ ଉପରେ ଦିଶୁଥିବା ହାତଟି ଗଙ୍ଗାଜଳ ଭିତରକୁ ଚାଲିଗଲା ।

ଗଙ୍ଗାକୂଳରେ ଠିଆ ହୋଇଥିବା ଲୋକମାନେ ଏହି ବିଚିତ୍ର ଘଟଣା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଏହାପରେ ବରରୁଚି



ପ୍ରଜାମାନଙ୍କୁ ସମ୍ବୋଧନ କରି କହିଲେ – "ଦେଖନ୍ତୁ ଦର୍ଶକ ଭଦ୍ରମଣ୍ଡଳୀ, ନନ୍ଦରାଜା ସିନା ମୋର ପ୍ରତିଭାକୁ ଦେଖି ସନ୍ତୁଷ୍ଟ ହୋଇଥିଲେ, କିନ୍ତୁ ଗଙ୍ଗାମାତା ମୋର ଭକ୍ତିରେ ବହୁତ ସନ୍ତୁଷ୍ଟ ହୋଇ ନିଜେ ଏହିସବୁ ସ୍ୱର୍ଣ୍ଣମୁଦ୍ରା ମୋତେ ଦେଇଛନ୍ତି ।

ଦର୍ଶକମଣ୍ଡଳୀ 'ଗଙ୍ଗାମାତାଙ୍କ ଜୟ', 'ଗଙ୍ଗାମାତାଙ୍କ ଭକ୍ତ କବି ବରରୁଚିଙ୍କର ଜୟ' ଧ୍ୱନି ଦେଇ ଆନନ୍ଦରେ ନାଚିଉଠିଲେ ।

ଦର୍ଶକମାନଙ୍କ ଭିଡ଼ ଭିତରେ ବରରୁଚି ଅତି ଚତୁରତା ସହିତ ନିଜର କେତେଜଣ ଲୋକଙ୍କୁ ଠିଆ



କରାଇଥିଲେ । ସେମାନେ ଉପସ୍ଥିତ ଦର୍ଶକମାନଙ୍କୁ ବୁଝାଇଲେ, ''ଭାଇମାନେ, ମହାମନ୍ତ୍ରୀ କବିସମ୍ରାଟ ବରରୁଚିଙ୍କ ପ୍ରତିଭା ଦେଖି ଈର୍ଷାରେ ଜଳୁଛନ୍ତି । ଚାଲନ୍ତୁ, ଆମେମାନେ ସମସ୍ତେ ମିଳିମିଶି କବି ବରରୁଚିଙ୍କର ଏହି ଭକ୍ତିର ଚମତ୍କାରିତା ବିଷୟରେ ରାଜାଙ୍କୁ ଅବଗତ କରାଇବା ।''

ବରରୁଚିଙ୍କର ଲୋକମାନେ ଅନ୍ୟ ନଗରବାସୀଙ୍କ ସହିତ ମିଶି ମହାରାଜ ନନ୍ଦଙ୍କ ପାଖରେ ପହଞ୍ଚିଲେ । ସେମାନେ କଥାଟାକୁ ଆଉ ଟିକେ ବଢ଼େଇଦେଇ ବରରୁଚିଙ୍କର ସ୍ତୁତିର ମହିମା ବିଷୟରେ ଶୁଣାଇଲେ । ଗଙ୍ଗାମାତା କିପରି ତାଙ୍କ ସ୍ତୁତି ଓ ଶ୍ଳୋକ ଶୁଣି ଆଶୀର୍ବାଦ ସ୍ୱରୂପ ଶହେ ଆଠ ସ୍ୱର୍ଣ୍ଣମୁଦ୍ରା ଦେଲେ, ସେକଥା ବି କହିଲେ । ପ୍ରଜାମାନଙ୍କର କଥା ଶୁଣି ରାଜା ନନ୍ଦ ଆଶ୍ଚର୍ଯ୍ୟଚକିତ ହୋଇପଡ଼ିଲେ । ସେ ତୁରନ୍ତ ଦୂତ ପଠାଇ ମହାମନ୍ତ୍ରୀ ଶକଟାରଙ୍କୁ ଡକାଇଲେ । ତାଙ୍କୁ ସବୁକଥା କହିସାରି ରାଜା ନନ୍ଦ ଆଗାମୀ କାଲି ବଡ଼ି ସକାଳୁ ନିଜେ ଯାଇ ବରରୁଚିଙ୍କର ଚମତ୍କାରିତା ଏବଂ ଗଙ୍ଗାମାତାଙ୍କ ଆଶୀର୍ବାଦ ଦେଖିବାକୁ ଇଚ୍ଛା ପ୍ରକାଶ କଲେ । ମହାମନ୍ତ୍ରୀ ତାଙ୍କ କଥାରେ ରାଜିହୋଇ ତାଙ୍କ ସହିତ ଗଙ୍ଗାକୂଳକୁ ଯିବାପାଇଁ ନିଷ୍ପତ୍ତି ନେଲେ ।

ମହାମନ୍ତ୍ରୀ ଶକଟାର ତାଙ୍କର ଚାରିଜଣ ବିଶ୍ୱାସୀ ଗୁପ୍ତଚରଙ୍କୁ ଡକାଇଲେ । ବରରୁଚିଙ୍କର ଚମତ୍କାରୀ ଗଙ୍ଗାଭକ୍ତିର ପ୍ରକୃତ ରହସ୍ୟ କ'ଣ, ତାକୁ ବୁଝି ଆସିବାକୁ ଆଦେଶ ଦେଲେ ।

ଗୁପ୍ତଚର ଚୁପ୍‌ଚାପ୍ ଗଙ୍ଗାନଦୀ କୂଳରେ ଥିବା ଗୋଟାଏ ବଡ଼ଗଛ ଉପରେ ଲୁଚି ରହିଲେ । ସେମାନେ ଏମିତି ଭାବରେ ବସିଥିଲେ, ଯେମିତିକି ବରରୁଚିଙ୍କର ଗଙ୍ଗାସ୍ତୁତି କରିବା ଜାଗାଟି ଭଲଭାବରେ ଦେଖାଯାଇପାରିବ ।

ରାତି ବଢ଼ି ବଢ଼ି ଚାଲିଥାଏ । ଚାରିଆଡ଼ ଶୂନ୍‌ଶାନ୍ । ଗଭୀର ଅନ୍ଧକାର । ଗୁପ୍ତଚରମାନେ ଦେଖିବାକୁ ପାଇଲେ, କବି ବରରୁଚି ଜଣେ ଚୋର ଭଳି ଲୁଚି ଆସି ଗଙ୍ଗାକୂଳରେ ପହଞ୍ଚିଲେ । ଅଣ୍ଟା ବୁଡ଼ିବା ପର୍ଯ୍ୟନ୍ତ ଗଙ୍ଗାଜଳରେ ପଶି କିଛି ଗୋଟାଏ ଜିନିଷକୁ ବୁଡ଼େଇ ରଖିଦେଲେ । ପୁଣି ବାହାରକୁ ଆସି



ଚାରିଆଡ଼କୁ ନିରୀକ୍ଷଣ କଲେ । ତା'ପରେ ଖୁସିରେ ନିଜ ଘରକୁ ଫେରିଗଲେ ।

ଏବେ ମହାମନ୍ତ୍ରୀଙ୍କର ଗୁପ୍ତଚରମାନେ ଗଛରୁ ଓହ୍ଲାଇଲେ । ଗଙ୍ଗାଜଳ ଭିତରେ ପଶି ଅଣ୍ଡାଳିବାରୁ ବରରୁଚି ରଖିଥିବା ଜିନିଷକୁ ପାଇଗଲେ । ସେଇଟା ଗୋଟାଏ ଯନ୍ତ୍ର ଥିଲା । ସେହି ଯନ୍ତ୍ରରେ ଗୋଟାଏ ତିଆରିକରା ହାତ ଲାଗିଥିଲା । ସେହି ହାତରେ ବରରୁଚି ନିଜେ ଶହେ ସ୍ୱର୍ଣ୍ଣମୁଦ୍ରା ଥିବା ଗୋଟିଏ ମୁଣାକୁ ଧରାଇ ଦେଇଥିଲେ ।

ଗୁପ୍ତଚରମାନେ ସେ ସ୍ୱର୍ଣ୍ଣମୁଦ୍ରାଗୁଡ଼ିକୁ ନେଇ ଆସି ଖାଲି ଯନ୍ତ୍ରଟିକୁ ପୂର୍ବପରି ପାଣିରେ ବୁଡ଼େଇ ରଖିଦେଇ ଆସିଲେ । ମହାମନ୍ତ୍ରୀଙ୍କ ଆଗରେ ସେମାନେ ବରରୁଚିଙ୍କର ସବୁ ଚାଲାକି କଥା କହିଦେଲେ । ସ୍ୱର୍ଣ୍ଣମୁଦ୍ରାଗୁଡ଼ିକୁ ମଧ ମହାମନ୍ତ୍ରୀଙ୍କୁ ଦେଇଦେଲେ ।

ଏଥର ମହାମନ୍ତ୍ରୀ ନିଶ୍ଚିନ୍ତରେ ରାତିଟି କଟେଇଲେ ।

ସକାଳୁ ସକାଳୁ ଜଣେ ସେବକ ଆସି ତାଙ୍କୁ ରାଜା ନନ୍ଦ ଦରବାରକୁ ଡକାଇଛନ୍ତି ବୋଲି କହିଲା । ମହାମନ୍ତ୍ରୀ ଶକଟାର ମହାଆନନ୍ଦରେ ମହାରାଜାଙ୍କ ରାଜମହଲରେ ପହଞ୍ଚିଗଲେ ।

ରାଜା ନନ୍ଦଙ୍କ ସହିତ ମହାମନ୍ତ୍ରୀ ଗଙ୍ଗାନଦୀ କୂଳରେ ପହଞ୍ଚିଲେ । ଗଙ୍ଗା ନଦୀକୂଳରେ ନନ୍ଦ ରାଜା ଓ ମହାମନ୍ତ୍ରୀଙ୍କ ଗହଣରେ ହଜାର ହଜାର ଲୋକଙ୍କ ଭିଡ଼ ଜମିଥିଲା । କବି ବରରୁଚି ଏତେ ଲୋକଙ୍କର ଭିଡ଼ ଦେଖି ଖୁସି ହୋଇଗଲେ । ମନକୁ ମନ ଭାବିଲେ, ଆଜି ସମସ୍ତଙ୍କ ଆଗରେ ରାଜା ନନ୍ଦ ମୋ ଶ୍ଳୋକର ଚମତ୍କାରିତା ଦେଖି ନିଶ୍ଚୟ ପ୍ରଭାବିତ ହେବେ ।

ମହାମନ୍ତ୍ରୀ ଶକଟାର ଚୁପ୍‌ହୋଇ ରହିଥାନ୍ତି । କିନ୍ତୁ ମୁରୁକି ହସ ତାଙ୍କ ମୁହଁରେ ଥାଏ । ସେତେବେଳେ ବରରୁଚି ଅଣ୍ଟାଏ ପାଣିରେ ଠିଆ ହୋଇଥାନ୍ତି । ସେ ଅଖଣ୍ଡ ଭକ୍ତିଭାବ ଦେଖାଇ ଉଚ୍ଚସ୍ୱରରେ ଗଙ୍ଗାମାତାଙ୍କର ସ୍ତୁତି ଓ ଶ୍ଳୋକ ଗାଇବା ଆରମ୍ଭ କରିଦେଲେ । ନଦୀକୂଳରେ ଠିଆ ହୋଇଥିବା ଲୋକମାନେ ବରରୁଚିଙ୍କର ଜୟ ଧ୍ୱନି ଦେଇ ଚାଲିଥାନ୍ତି ।

ଏଥର ବରରୁଚିଙ୍କର ଗଙ୍ଗାସ୍ତୁତି ଶେଷ ହୋଇଗଲା ।

ଗଙ୍ଗାକୂଳରେ ଠିଆ ହୋଇଥିବା ଲୋକମାନେ ବଡ଼ ଆଗ୍ରହର ସହିତ ଚାହିଁ ରହିଥାନ୍ତି, କେମିତି ଗଙ୍ଗାଜଳ ଭିତରୁ ଗଙ୍ଗାମାତାଙ୍କ ହାତ ପଦାକୁ ବାହାରି ଆସି ବରରୁଚିଙ୍କୁ ସ୍ୱର୍ଣ୍ଣମୁଦ୍ରା ଦେବେ । ତାକୁ ଦେଖିବାକୁ ସମସ୍ତେ ଅପେକ୍ଷା କରିଥାନ୍ତି ।

ବରରୁଚି ପାଣି ଭିତରେ ବୁଡ଼ାଇ ରଖିଥିବା ଯନ୍ତ୍ର ଉପରେ ପାଦରଖି ତା'ର ଖିଲକୁ ଚାପିଲେ ।

ଗଙ୍ଗାଜଳ ଭିତରୁ ଖାଲି ହାତଟା ତ ଉପରକୁ ଉଠିଆସିଲା, କିନ୍ତୁ ସେ ହାତରେ ସ୍ୱର୍ଣ୍ଣମୁଦ୍ରାର ମୁଣାଟା ନଥିଲା । ବରରୁଚି ବ୍ୟସ୍ତ ହୋଇପଡ଼ି ବାରମ୍ବାର ସେ ଯନ୍ତ୍ରର ଖିଲକୁ ଚାପି ଚାଲିଥାନ୍ତି । ଥରକୁ ଥର ଖାଲି ହାତଟା ଉପରକୁ ଉଠୁଥାଏ, ପୁଣି ତଳକୁ ଚାଲିଯାଉଥାଏ ।

ବରରୁଚି ଲାଜରେ ମୁଣ୍ଡ ତଳକୁ କରି ସେହି ଗଙ୍ଗାଜଳ ଭିତରେ ଠିଆ ହୋଇ କ'ଣ ସବୁ ଭାବୁଥାନ୍ତି ।

ସେତିକିବେଳେ ମହାମନ୍ତ୍ରୀ ଶକଟାର ବରରୁଚିଙ୍କ ପାଖକୁ ଯାଇ କହିଲେ, "ନିଅନ୍ତୁ କବିବର, ଗଙ୍ଗାମାତା ଆପଣଙ୍କୁ ଯେଉଁ ଶହେ ଆଠ ସ୍ୱର୍ଣ୍ଣମୁଦ୍ରା ପ୍ରତିଦିନ ଦିଅନ୍ତି, ଇଏ ସେହି ମୁଦ୍ରା । ଆଜି ଗଙ୍ଗାମାତା ଆପଣଙ୍କୁ କିଛି ଦେବେନାହିଁ । ସେଇଥିପାଇଁ ଆଜି ଆପଣ ମୋଠାରୁ ଗ୍ରହଣ କରନ୍ତୁ ।"

ଏଥର ମହାମନ୍ତ୍ରୀ ରାଜା ନନ୍ଦଙ୍କୁ ସବୁକଥା ଆମୂଳଚୂଳ ବୁଝେଇଦେଲେ । ବରରୁଚିଙ୍କ ଉଦ୍ଦେଶ୍ୟରେ କହିଲେ, "ଅହଂକାର ହିଁ ଆପଣଙ୍କ ଅପମାନର କାରଣ ହୋଇଗଲା ବରରୁଚି ।



ଲୋକମାନଙ୍କୁ କେହି ବି କିଛିଦିନ ପାଇଁ ଠକି ଦେଇପାରେ, କିନ୍ତୁ ସବୁଦିନ ତାର ଠକାମି କାମ ଦିଏନାହିଁ ।''

ବରରୁଚି ଲାଜରେ ସଢ଼ିଗଲେ । ଉପସ୍ଥିତ ପ୍ରଜାମାନେ କବିଙ୍କୁ ତାଙ୍କର ଠକଗୁଣ ପାଇଁ ଧିକ୍କାର କରିବାରେ ଲାଗି ପଡ଼ିଲେ । ମହାମନ୍ତ୍ରୀ ସମସ୍ତଙ୍କୁ ଶାନ୍ତ କରାଇ କହିଲେ, ''ଆଜି ଏଠାରେ ଅହଂକାରର ପରାଜୟ ଘଟିଛି । ପ୍ରକୃତରେ ବରରୁଚି ହେଉଛନ୍ତି ଜଣେ ଉଚ୍ଚମାନର କବି । କିନ୍ତୁ କ୍ରୋଧ, ଲୋଭ ଓ ଅହଂକାର ମଣିଷର ସବୁ ଭଲଗୁଣକୁ ନଷ୍ଟ କରି ଦେଇଥାଏ, ଯାହା ବରରୁଚିଙ୍କ କ୍ଷେତ୍ରରେ ଘଟିଛି ।

ଶେଷରେ ମହାମନ୍ତ୍ରୀଙ୍କ ଅନୁରୋଧ ରକ୍ଷାକରି ରାଜା ନନ୍ଦ କବି ବରରୁଚିଙ୍କୁ କ୍ଷମା ଦେଲେ ।



